# ଅମର-ଶହୀଦ



ଓଡ଼ିଶା ପବ୍ଲିଶି ହାଉସ୍

ବ୍ରହ୍ମପୁର : କଟକ : ସମ୍ବଲପୁର : ବାଲେଶ୍ୱର : ଜୟପୁର

# ଅମର-ଶହୀଦ

ଲେଖକ:—
ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ

ନୂତନ ସଂସ୍କରଣ
୧୯୫୪

ପ୍ରକାଶକ:—
ଓଡ଼ିଶା ପବ୍ଲିଶିଂ ହାଉସ୍
ବ୍ରହ୍ମପୁର, କଟକ, ସମ୍ବଲପୁର, ବାଲେଶ୍ୱର, ଜୟପୁର

ମୂଲ୍ୟ—ଏକଟଙ୍କା ଚାରିଅଣା

# ମୁକୁଟହୀନ ରଜା

( ୧ )

ସେହି ଦେଶ ଗାଥା    ବଖାଣିଲେ କବି
ଖୋଳିଲେ ଶିଳ୍ପୀ
କେତେ ଦେଉଳେ,
ପରନ୍ତୁ ସେ କଥା    ଅଛି ପୁଣି ବାକି
କହିବାକୁ କାହିଁ
ଶକତି ଠୂଲେ !

( ୨ )

କେତେ ମହାଯୋଦ୍ଧା    ଜିଣିଲେ ଲଢ଼େଇ
ଦେଖାଇ ସାହସ
ରୁଧିର ଢାଳି
ଆଜି ଆଚମ୍ବିତ    ଲାଗେ, ଯେତେ ଦେଖେ
ଭାରତ-ପ୍ରଦୀପ
ଗଲେ ସେ ଜାଳି ।

( ୩ )

ଯେ ରାଜ୍ୟସୀମାକୁ ବେଢ଼ିଛି ଉତ୍ତରେ
ଦକ୍ଷିଣେ ପଶ୍ଚିମେ
ବଣ ପାହାଡ଼
ଗଡ଼ଖାଇ ପରି ପୂରୁବେ ଦକ୍ଷିଣେ
ସୁନୀଳ ଜଳଧି
କରେ ଉହାଡ଼ ।

( ୪ )

ଉତ୍ତର-ପଶ୍ଚିମ ସୀମା ଜଗିଛନ୍ତି
ସାନ୍ତାଳ ଭୂମିଜ
କୋହ୍ଲ-ସନ୍ତାନ
ସିଦ୍ଧଭୂମି-ସିଦ୍ଧ— ସମାନ ବୀର ସେ
ଦେଶ ପାଇଁ କଲେ
ଜୀବନ ଦାନ ।

( ୫ )

ଦକ୍ଷିଣ ସୀମାରେ କୋରାପୁଟ ଜିଲା
ଗୋଦାବରୀ ଯାକେ
ଯାଇଛି ବ୍ୟାପି
ଜଗିଛନ୍ତି ତାକୁ କୋୟା କନ୍ଧ ବୀର
ପରଜା ଶବର
ମହା ପ୍ରତାପୀ ।

( ୬ )

ରଖିଲେ ଓଡ଼ିଆ— ମହତ ସେ ଯୁଗେ
ଗଢ଼ିଲେ ଦେଶର
ଗୌରବ ଗୁଞ୍ଜ
ଶବର-ଦେବତା ହେଲେ ଜଗନ୍ନାଥ
ଭାରତେ ପୂଜିତ
ସେ ଯେଉଁ ଆଜି ।

( ୭ )

ଧରମେ କରମେ ସୁଖେ ଦୁଃଖେ ସାଥୀ
ଓଡ଼ିଆ ଶବର
ପରଜା କୋୟା
ଯୁଗ ଯୁଗ ଧରି ଭାଇ ବନ୍ଧୁ ପରି
ରହିଛନ୍ତି କରି
ସେନେହ ଦୟା ।

( ୮ )

ମିଳାଇ କାନ୍ଧକୁ କାନ୍ଧ ଲଢ଼ିଛନ୍ତି
ତୋଳିଛନ୍ତି ଦେଶେ
ବିଜୟ-ସ୍ତମ୍ଭ
ଅତୀତ କାଳରେ ଉଡ଼ାଇ ନିଶାଣ
ବଢ଼ାଇଲେ ସେ ତ
ଜାତିର ଦମ୍ଭ ।

( ୯ )

କାଞ୍ଚି-ଅଭିଯାନେ ଢାଳିଲେ ରୁଧିର
ଯୁଝିଥିଲେ ଗୌଡ଼—
କର୍ଣ୍ଣାଟ-ରଣେ ।
ବଢ଼ିଥିଲେ ପିଇ ଝରଣା ଜଳ ଯେ
ଫଳ ମୂଳ ଖାଇ
ଗିରିଅରଣ୍ୟେ ।

( ୧୦ )

ପ୍ରକୃତି-କୋଳରେ ସଦା ଯେ ସ୍ୱାଧୀନ
ନ ଜାଣନ୍ତି ମିଛ
କପଟ ଛନ୍ଦ,
ଓଡ଼ିଶା ମାଟିର ଆଦିବାସୀ ସେହୁ
କୋୟା କୋନ୍ଧ କୁର୍ମି
ଶବର କନ୍ଧ ।

(୧୧)

ରହିଥିଲେ ସେହୁ କାଳ କାଳ ଧରି
ଆପଣା ରାଇଜେ
ମାଲିକ ନିଜେ
ଜାଣି ତ ନ ଥିଲେ ବିଦେଶୀ ଶାସନ
ଶିଖି ତ ନ ଥିଲେ
ଦାସତ୍ୱ କି ଯେ !

( ୧୨ )

ସ୍ୱଦେଶୀ ଶାସକ ଆସିଲେ ଯେ କାଳେ
ରଖିଲେ ରାଜ୍ୟକୁ
କରକବଳେ
କୋରାପୁଟ କୋସ୍ଥା- ଗାର ହୃଦସ୍ଥରେ
ସେ କାଳେ ସ୍ୱଦ୍ରୋହ—
ଅନଳ ଜଳେ ।

( ୧୩ )

ପୁଲିସ ରାଜୁତି ଚଳିଲା କେବଳ
ଦାରୋଗା ସିପାହି
ହୋଇଲେ ରାଜା
ସରକାରି ଲୋକ କଲେ ଅତ୍ୟାଚାର
ଗରିବ ମୂରୁଖ
ପାଇଲେ ସଜା ।

( ୧୪ )

ମାଲକାନଗିରି ପୁଲିସ ଥାନାର
ଦାରୋଗା ସିପାହି
କଲେ ପ୍ରତାପ
ଆଇନ ନାମରେ କଲେ ବେଆଇନ
ନ ମାନିଲେ କଷ୍ଟ
ଅନ୍ୟାୟ ପାପ ।

( ୧୫ )

ମଦ ମାଂସ ଖାଇ ହେଲେ ମତୁଆଲ
ସ୍ୱେଚ୍ଛାଚାର ହେଲା
ଶାସନ-ମତ୍ତ
ମଣିଷଙ୍କୁ ସେହୁ ବଜାଇଲେ ଘଣ୍ଟା
କରିଲେ ପ୍ରହାର
ଜଗାଇ ଘାତ ।

( ୧୬ )

ଲାଞ୍ଚ ମିଛ ସବୁ ଶିଖାଇଲେ ଆଗ
ଯାହା ଘରୁ ଇଚ୍ଛା
ଲୁଟିଲେ ଧନ
କୁଳନାରୀଙ୍କର ମହତ ନେବାକୁ
ପୂଳସର ପୁଣି
ବଳାଇ ମନ !

( ୧୭ )

ଦୌରାତ୍ମ୍ୟ ତାଙ୍କର ସହିବାର ସବୁ
ସୀମା ଡେଇଁ ହେଲା
ବାହାର ଅନ୍ତ
ସହିପାରେ କେତେ ମଣିଷଶରୀର
ଅତ୍ୟାଚାର ହେଲେ
ମଣିଷ ପ୍ରାନ୍ତ !

( ୧୮ )

ଗ୍ରାମ ଗ୍ଳଡ଼ ଲୋକେ ପଳାଇଲେ ଦୂରେ
ନଗ୍ନ ହୋଇଲା
ହାଟ ବଜାର
ଶ୍ମଶାନ ସମାନ ଦିଶିଲା ସବୁରି
ଖାଲି ପଡ଼ିଥିବା
ଘର ଦୁଆର ।

( ୧୯ )

କୋଯୁା-ଜାତି-ସ୍ୱର ଗାମାଡ୍ରୋଶ ଯେବେ
ଶୁଣିଲା ସବୁରି
ଦୁଃଖ-କାହାଣୀ
ବସି ଥିଲା ଧୈର୍ଯ୍ୟ ଧରି ବନ୍ଧୁ ଜନ
ଶେଷେ ହେଲା ତା’ର
ହୃଦୟ ହାଣି ।

( ୨୦ )

ଆପଣା ପୂରୁବ— ପୁରୁଷଙ୍କ କଥା
ସାହସ ଗାରବ
ପଡ଼ିଲା ମନେ
ବସାଇଥିଲେ ଯେ ନିଜ ବାହୁବଳେ
କେତେ ରାଜା ଆଣି
ରାଜ-ଆସନେ ।

( ୨୧ )

ବିଦେଶୀ ଇଂରେଜ- ଶାସକ ଆଜ୍ଞାରେ
ଦେଶୀ ଲୋକେ ଏବେ
ଦଅନ୍ତି ଦୁଃଖ
ଶାର୍ଦ୍ଦୂଳ ସମାନ ତାମାତୋରା ଆଖି
ଜଳି ଉଠେ କ୍ରୋଧେ,
ଭୀଷଣ ମୁଖ ।

( ୨୨ )

କମ୍ପେ ତା'ର ବାହୁ ବହେ ଖର ଶ୍ୱାସ
ଦେଖି ସ୍ୱଜନର
କାତରଭାବ
ଜାଲି ଥାଉ ମଡ଼ା ସମାନ ହୋଇଲେ
ଜୀଇଁବାରେ ତେବେ
କି ଅଛି ଲାଭ ?

( ୨୩ )

ଧନୁ, ଶର ବର୍ଚ୍ଛା କୁନ୍ତ ସେ ଧରିଲା
ଶକତି ସାହସ
ଅଛି ତା' ଅଙ୍ଗେ
ଡାକିଲା ଗରଜି "ଆସ ରେ ଜୁଆନ
"ଧନୁଶର ଧରି
ଆସ ମୋ ସଙ୍ଗେ ।

( ୨୪ )

"ଆସ ପରଖିବା ପୁଲିସର ବଳ
ରଖିବା ଆମର
ମାନ ମହତ
"ଦାଣ୍ଡରେ ଗୁଳିବେ ଆମ ଝିଅ ବୋହୂ
ପୁଲିସ ଦାଉରୁ
ହେବେ ମୁକତ ।

( ୨୫ )

"ଆମ ପିଲାଛୁଆ ହସିବେ ନାଚିବେ
ଘରେ ନ ଲୁଚିବେ
ଭୟରେ ଆଉ
"ନ ପାରିବା ସହି ଏତେ ଅତ୍ୟାଚାର
ଗଲେ ପଛେ ଏବେ
ଜୀବନ ଯାଉ ।

( ୨୬ )

"ଜୀଇଁଲେ ଜୀଇଁବା ମଣିଷ ପରି ହେ
ମଲେ ତ ମରିବା
ମଣିଷ ପରି
"ଆସ ଆସ ଭାଇ ନ ରହିବା ଆଉ
ପୋକ ମାଛି ଭଳି
ଜୀବନ ଧରି ।

( ୨୭ )

"ବନ୍ଧୁଙ୍କ ଆଗରେ ଗୁପ୍ତ ପଚାରିବ
କିଏ ସେ ଜୁଆନ
ଆସ ରେ ଆସ
"ନ ଆସିବ ଯେବେ ସବୁ ଅପମାନ
ଚିରକାଳ ତେବେ
ହେବ କି ଦାସ ?

( ୨୮ )

"ଚିର କାଳ ପାଇଁ ମାଆ ଭଉଣୀଙ୍କ
ଇଜତ ତୁମର
ଦେବ କି ସାର ?
"କେହି ନ ଆସିଲେ ଏକା ମୁହିଁ ଯିବ
ଜୀବନ ମୂର୍ଚ୍ଛିବ
ଅରାତି ମାର ।"

( ୨୯ )

ତାମାଣ୍ଡୋଙ୍କ କଥା ଶୁଣି ଶତ ଶତ
ଜୁଆନ ରକତ
ଉଠିଲା ତାତି
ତୀର ଧନୁ ଧରି ଚଢ଼ିଲେ ବାହାରି
ତାମାଣ୍ଡୋଙ୍କ ସଙ୍ଗେ
ମରିବେ ମାତି

( ୩୦ )

ବହୁଛି ଉଚ୍ଛନ ବଇଶାଖ ଝାଞ୍ଜି
ବଣ ପାହାଡ଼ରେ
ଲାଗିଛି ନିଆଁ
ପ୍ରତିହିଂସାନଳ ଜଳୁଛି ହୃଦୟେ
କୋଣ୍ଟ୍ର ଯୁବା ଆସି
ହୋଇଲେ ଠିଆ ।

( ୩୧ )

ଦେବୀଙ୍କ ସିନ୍ଦୂର କପାଳରେ ମାର
ଚଳନ୍ତି ଦରପେ
ସକଳ ବୀର
ଶତ୍ରୁ ରକତରେ ଯେମନ୍ତେ ଶତା ଯେ
ଧର ଧନୁ ହାତେ
ଯୋଖିଲେ ଶର

( ୩୨ )

ସବୁର ଆଗରେ ଚଳେ ଚାମାଡ଼ୋରା
ପକାଇ ପାହୁଲ
ଫୁଲାଇ ଜଣ
ଶତ ଶତ କୋଣ୍ଟ୍ର- ଯୁବକ କୁହାଟେ
ଜାଗେ ବନସ୍ଥଳୀ
କମ୍ପଇ ଦଶ ।

( ୩୩ )

* ପୋଦଆ ପୁଲିସ- ଥାନା ଉପରେ
କଲେ ସେ ଘେରାଉ
ରହିଲେ ଛକ
କାପୁରୁଷ ହୀନ ଦାରୋଗା ସିପାହି
ଧାଇଁ ଏଣେ ତେଣେ
ପଡ଼ିଲେ ଥକ ।

( ୩୪ )

ନ ପାଇଲେ ବାଟ ଯିବାକୁ ପଳାଇ
ଥାନାହତା ଡେଇଁ
ଜୀବନ ଘେନ
ପହିଁ ଗଲେ ତାଙ୍କୁ ଗୋଡ଼ାଇଲ ଅବା
ଛାମାଡୋରା ନଆଁ—
ନୟନ ବେନ ।

( ୩୫ )

ଫୁଟିଲ ବନ୍ଧୁକ ବରଷିଲ ଛାର
ଛାମାଡୋରା କେବେ
ଶିଖିନ ଡର
ଗୁହୁଁ ଗୁହୁଁ ସାତ ମୁଣ୍ଡ ଲୋଟିଗଲ
ଘାସ ନାଲ ହେଲ
ରକତ ଝର !

---

* ଛାମାଡୋରା ପ୍ରଥମେ ପୋଦଆ ପୁଲିସ ଥାନାକୁ ଦଖଲ କରିଥିଲେ ।

( ୩୬ )

ଛ'ଜଣ ସିପାହି ଅତି ଅଭ୍ୟାସୀ
ସାଙ୍ଗରେ ପୁଲିସ
ଦାରୋଗା ଜଣେ
ଚାମାଣ୍ଡୋର ଶର- ଆଘାତେ ସେଠାରେ
ଚିରଦିନ ପାଇଁ
ଶୋଇଲେ ରଣେ ।

( ୩୭ )

କି ହେଲା କି ହେଲା ! ପ୍ରବଳ ପ୍ରତାପୀ
ଇଂରେଜ ଶାସନେ
ଏ କି ଘଟଣା
ବଣୁଆ ଜାତିର ମଣିଷ ଗୋଟାଏ
ସବୁର ବୁଦ୍ଧିକୁ
କରିଲା ବଣା !

( ୩୮ )

ହାଇଦରାବାଦ ସୈନ୍ୟ ଗୁଳିରୁ
ଗୋରା ସେନାପତି
ଆସିଲେ ତହୁଁ
ଆଣିଲେ ସଙ୍ଗତେ ଶହେ ଜଣ ଫୌଜ
ଚାମାଣ୍ଡୋର ସଙ୍ଗେ
ଯୁଝିଲେ ବହୁ ।

( ୩୯ )

ଦେଖିଲେ ସହଜ ନୁହେ ସେ ଆଦମ
ଅନାର୍ଯ୍ୟ କୋୟାର
ବଳ ସାହସ
ହାରିଯାଇ କଲେ ନିଜେ ପଳାୟନ
ଗୋରା ସେନାପତି
ହୋଇ ବିରସ ।

( ୪୦ )

ମଇ ମାସ ଛଅ ତାରିଖ ସେ ଦିନ
ଅଠରଶଅଶୀ
ବିଦେଶୀ ସାଲ
ବିଜୁଳି ସମାନ ବ୍ୟାପିଲା ଖବର
ଗୃହିଲେ କୋୟାଙ୍କର
ଜାଳି ମଶାଲ ।

( ୪୧ )

ପର୍ବତେ ପର୍ବତେ ଜଳିଲା ଦିହୁଡ଼ି
ବାଜିଲା ଠମକ
ମହୁରୀ ବାଜା
'ଜୟ ତାମାଡୋରା' ଶୁଭିଲା ଶବଦ
'ମାଲକାନଗିରି
ମୁଲକ-ରାଜା' ।

( ୪୨ )

* ନଅାଁଗିର, ଆମ୍ବା— କୋଣ୍ଡା, ବଜ୍ରକୋଣ୍ଡା,
କୋଡ଼ାକୋଣ୍ଡା ପୁଟା—
ସିଙ୍ଗି ଶବର
ଜାଣିଲେ ଦମ୍ଭଭ୍ ଅତି ଉଲ୍ଲାସରେ
ଗାଇ ତାମାଡ଼ୋରା—
ଜୟ ଖବର ।

( ୪୩ )

ଓଡ଼ିଶା ରାଇଜେ ସବୁଠାରୁ ଉଚ୍ଚ
ଦୁଧାରି ପର୍ବତ
ଯାଆଁଲା ଭାଇ
ସବୁର ଊର୍ଦ୍ଧ୍ୱରେ ଫରୁଥିଲେ ଅବା
ତାମାଡ଼ୋରା ଜୟ—
ଗୀତିକା ଗାଇ ।

---

* କୋରାପୁଟ ଜିଲ୍ଲାର କେତେକ ପର୍ବତର ନାମ । ପୁଟା-ସିଙ୍ଗି ପର୍ବତ ନିକଟରେ ବହୁ ଶବର ବସତି ଅଛି । ଦୁଧାରି ବା ଦେଓମାଳୀ ଓଡ଼ିଶା ରାଜ୍ୟର ସର୍ବୋଚ୍ଚ ଶୃଙ୍ଗ । ଏହାର ଉଚ୍ଚତା ସମୁଦ୍ର ପତ୍ତନଠାରୁ ୫୪୮୬ ଫୁଟ ।

( ୪୪ )

ବଂଶଧାରା ନାଗ— ବଳ୍ଲୀ ଦୁଇ ନଦୀ
ମଝିରେ ପର୍ବତ
କୈଳାସ କୋଠା
ନଦୀ ଗିରି ବନ ପଶୁ ପକ୍ଷୀ ନର
ଗାଇବାକୁ ଜୟ
ହେଲେ କ ଗୋଠା !

( ୪୫ )

ଗଲା ସେ ଶବଦ ନେଇଁ ଗ୍ରାମେ ଗ୍ରାମେ
ରମ୍ଭେଲୁଗୁଡ଼ାରୁ
ପୁରୁଣା ପାଣି
କୋରାପୁଟ ଜୟ- ପୁର ରାୟଗଡ଼ା
ଅଷମକଣ୍ଠକେ
ଗଲା ସେ ବାଣୀ

( ୪୬ )

ନବରଙ୍ଗପୁର ଗୁଣୁପୁରଠାରେ
ଶୁଣିଲେ ବାରତା
ଚକିତ ଜନ
କଳାହାଣ୍ଡି ପୁଣି ବସ୍ତର ରାଇଜେ
ଛାମାଡୋରା ନାମ
ହୋଇଲା- ଧନ୍ୟ ।

( ୪୭ )

ମୁକନ୍ଦ ନମ୍ବ୍ୟାର ମାଇଲେ ଅବଳା
ଶିଶୁଏ ଖେଳଲେ
ହରଷ ଚିତ୍ତ
'ମାଲକାନ ଗିରି- ମୁଲକର ରାଜା'
ଚାମାଡ଼ୋର ନାମେ
ଗାଇଲେ ଗୀତ ।

( ୪୮ )

କୋପ୍ଥା ଯୁବକର ବୃନ୍ଦଭେ ଲଢ଼େଇ
ନାଚବାଜା ସଙ୍ଗେ
ହଶିଲ ତୋର
ଅବା କରୁଛୁ ସେ ଲଢ଼େଇ ଖଣ୍ଡଣ
ବେଶ ପିନ୍ଧି ହୁଏ
ମହୁଷ ଯୋଦ୍ଧା ।

( ୪୯ )

ମୁଣ୍ଡରେ ପିନ୍ଧନ୍ତି ବୃଷଭର ଶିଙ୍ଘ
ମହୁଷ ଶିଙ୍ଘରୁ
ଦୁଇଟା ଅବା
ପାଦ ପକାଉଛନ୍ତି ବାଜା ତାଳେ ତାଳେ
ନାଚେ ଯୁଦ୍ଧ ନାଚ
ହଶଇ ଶୋଭା ।

( ୫୦ )

ଫଟା ଦଣେ ପିନା ମନ୍ଦିରର ଶିଙ୍ଘ
ଘୁଞ୍ଚିଲ ବେଲକୁ
ଦୁଏ ଗୋଟାଏ
କୋଉଁ ଯୁବା ବୁଝେ ଏ କଥା ମରମ
ବଙ୍କେ ସେନ୍ଦ୍ରପର
ମରିବାଯାଏ ।

( ୫୧ )

ଆବର ବୁଝନ୍ତ ଏ କଥା ମରମ
କୋରପୁଟ ଜିଲ୍ଲ
କୋଉଁ ଯୁବଣ
ବାହୁରେ ବାହୁକୁ ଛନ୍ଧ ଦଳେ ଦଳେ
ଗୋଲ୍ଲକାରେ ନାଚ
କରନ୍ତ ଗତ ।

( ୫୨ )

କର ହାସ ଖେଳ ଗାଆନ୍ତ ସେ ଗୀତ
ବାଜୁଥାଏ ଢୋଲ
ପାଦେ ଯେ ଗ୍ରତ
ସେ ଗୀତ ଭିତରେ ଚାମାଡ଼ୋଙ୍କ ନାମ
ଶୁଣିବା ଲୋକର
ଉଲୁସେ ଗ୍ଡୁତ ।

( ୫୩ )

ପରଜା ଶବର କୋୟା କନ୍ଧ ମିଳି
କହନ୍ତି, "ସାବାସ୍
ସାବାସ୍ ପୁଅ
"ବଣୁଆ ଜାତର ହସ ଫୁଟାଇଲୁ
ଉପରକୁ କଲୁ
ଆମର ମୁହଁ ।"

( ୫୪ )

ଛାମାଡ଼ୋଗ୍ର ଗୀତ ଗାଆନ୍ତି ପକ୍ଷୀଏ
ପର୍ବତ କନ୍ଦରେ
ବନଗହଳେ
ଧନ୍ୟ ରେ ସାହସ ଉଚ୍ଛୁଳିଲା ଯଶ
କୋରାପୁଟ ଜଲ—
ସରିତ ଜଳେ ।

( ୫୫ )

* ମାଛକୁଣ୍ଡ ପାଣି ପଡ଼ିଲା ଉଜାଣି
ପର୍ବତ ଉପରୁ
ଗର୍ଜି ଭୀଷଣ
ବାଞ୍ଛିଲା ଅପୂର୍ବ ବିଜୁଳି ଶକତି
ମୁଖର କରି ସେ
ଘୋର ଅରଣ୍ୟ ।

* ମାଛକୁଣ୍ଡ ନଦୀର ଡୁଡୁମା ଜଳପ୍ରପାତରୁ ବିଜୁଳି ଶକ୍ତି ଉତ୍ପାଦନ ପାଇଁ କାମ ଚାଲିଛି ।

( ୫୬ )

* ଇନ୍ଦ୍ରବଣ୍ଟ, ନାଗ— ବଲ୍ଲୀ କୋଲ୍ଲବରେ
ଶୁଣିଲ କୁମ୍ଭୀର
ଚକିତ ହୋଇ
ଜୀବନ ଭୟରେ ଗଭୀର ଜଳରେ
ଲୁଚିଲେ ଶରୀର
ରହିଲ ଶୋଇ ।

( ୫୭ )

ମହାବଳ ବାଘ ଲୁଚିଲ ଭୟରେ
ବିଷମକଣ୍ଟକ
ଘୋର ବନସ୍ତେ
କୃଷ୍ଣସାର, କ୍ଷୁଦ୍ର ଖୁରଙ୍ଗ, ଶମ୍ବର
ନିର୍ଭୟେ ପିଇଲେ
ଜଳ ସମସ୍ତେ ।

( ୫୮ )

ବଣୁଆ କୁକୁର ଦଳ ବାନ୍ଧି ଗଲେ,
ବଲିମେଲା † ବନେ
ବନ୍ୟ ମହିଷ
ଚାମାଡ଼ୋର ନାମ ଶୁଣି ଥକା ହୋଇ
ରହନ୍ତି ଜୀବା ସେ
ନ ଦଶେ ଦିଶ !

---

* ଇନ୍ଦ୍ରବଣ୍ଟ, ନାଗପଲ୍ଲୀ ଓ କୋଲବ ନଦୀ କୁମ୍ଭୀରମାନଙ୍କ ବାସସ୍ଥାନ ।

† ବଲିମେଲା ଜଙ୍ଗଲ ମାଲକାନଗିରି ତାଲୁକର ଅନ୍ତର୍ଭୁକ୍ତ । ଏହା ନିକଟରେ ବନ୍ୟ ମହିଷ ଦେଖାଯାନ୍ତି ।

( ୫୯ )

ଦୁଇ ମାସ ପାଇଁ ଚାମାଡୋର ହେଲ
ମାଲ୍‌କାନ ଗିରି
ତାଲୁକା ରାଜା
ଦୁଇ ମାସ ପାଇଁ କୋସ୍ତା ଯୁବକର
ଦେହ ମନ ବଡ଼
ରହିଲ ତାଜା ।

( ୬୦ )

ଆସିଲେ ତା'ପରେ ସିପାହି ଫଉଜ
ବହୁତ ସଂଖ୍ୟାରେ
ସେଠାକୁ ଧାଇଁ
ଲାଗିଲା ଲଢ଼େଇ ଶେଷେ ଚାମାଡୋର
ରମ୍ପା ଜଙ୍ଗଲରେ
ଲୁଚିଲା ଯାଇଁ ।

( ୬୧ )

ଡାକିଲେ ଫଉଜ, "ଧରା ଦିଅ ଆସେ
ନୋହିଲେ ନଷ୍ଟ ସୁ
ଯିବଟି ପ୍ରାଣ ।"
ଶୁଣି ସେ ଡାକରା ନ ଦିଅଇ ଧରା,
ଚାମାଡୋରା ଗୁପ୍ତ
ଲୁହାରୁ ଠାଣ ।

( ୭୨ )

ସେ ଘୃଣ୍ୟ ଉପରେ ଫଉଜର ଗୁଳ
ବସି କୁଟାଇଲ
ରକତ ସୁଅ
ତେବେ ଛାମାଡ଼ୋର ଦେଲ ନାହିଁ ଧର
ନୁଆଁଇଲ ନାହିଁ
ତେବେ ତ ମୁଣ୍ଡ ।

( ୭୩ )

ଦେଖାଇଲ ସେ ତ କୋଟ୍ଠା ଯୁବକର
କାମ ପର ଏକା
କଥା ଗୋଟାଏ
ସ୍ୱାଧୀନତା-ମନ୍ତ୍ର ଜନ୍ମରୁ ଗୃଣି ସେ
ବଞ୍ଚିଲ ସେପର
ମରିବାଯାଏ ।

( ୭୪ )

ଅନ୍ଧାର ମୁଲକେ ଜାଳିଲ ଆଲୁଅ
କଭେ ନାହିଁ ଯାହା
ଗୁଳ ବନ୍ଧୁକେ
ସୁନାପାଟେ ସେନ୍ତ୍ର ଆଲୁଅ ଜଳଇ
ଦୁନିଆ ଯାକର
ମଣିଷ ବୁକେ ।

( ୭୫ )

ମାଲକାନ ଗିରି ଝାଙ୍ଗର ଭୂଇଁରେ
ଫୁଟାଇଲା ସେ ତ
ଜୀବନ-ଫୁଲ
ମାଲକାନ ଗିରି ଡାଲୁକା ବନକଲେ
ନ ଅଣ୍ଟିବ ତା'ର
ଦେବାକୁ ମୂଲ ।

( ୭୬ )

ମୁକୁଟ-ବିହୀନ ରାଜା ହୋଇଥିଲା
ବୀର ରାମାଡୋରା
ବନେ ତ ଏକା
ଦୁଇ ମାସପାଇଁ ଦେଉ ପଛେ ତାହା
ଇତିହାସେ ନାମ
ରହିଲା ଲେଖା ।

---

# ଅହିଂସା ସମର

ଲାଗିଛି ଜଗତେ
କେତେ ଯେ ଲଢ଼େଇ
କିଏ ସେ ପାରିବ କହି
ସୃଷ୍ଟିର ଆଦିମ
କାଳୁଁ ଏହି ଲୀଳା
ଚଳେ ଯୁଗେ ଯୁଗେ ବହି ।

ପଶୁ ପକ୍ଷୀ କୀଟ
ପତଙ୍ଗ ମଧ୍ୟରେ
ବେଶି ଯେହୁ ବଳବାନ
ଦୁର୍ବଳକୁ ସେହୁ
କରଇ ଆହାର
ଏ ତ ସଂସାର-ବିଧାନ ।

ମଣିଷ ଭିତରେ
ବେଶି ବଳବାନ
ବେଶି ବୁଦ୍ଧିମାନ ଯେହ୍ନ
ନାନା ରୂପେ ରକ୍ତ
କରେ ସେ ଶୋଷଣ
ମୂର୍ଖ ଦୁର୍ବଳର ଦେହୁ ।

ନାନା ଉପାୟରେ
ଧନ ଶୋଷି ତାକୁ
କରଇ ଦାଣ୍ଡ-ଭିକାରୀ
ହୋଇ ହୀନମାନ
କେତେ ଦୁଃଖୀ ଜନ
ନୟନୁଁ ବୁହାନ୍ତି ବାରି ।

ବାହୁ ବଳେ କେହି
ଦେଶ ଜୟ କରି
ମାରନ୍ତି ଅପର ଜନେ
କେତେ ଘର ଲୁଟି
ବଢ଼ାନ୍ତି ସେ ପାଣ୍ଠି
ବସନ୍ତି ରାଜା-ଆସନେ ।

ମହାବୀର ବୋଲି
ଲଭନ୍ତି ଖ୍ୟାତି·ସେ
ଇତିହାସ ଘୋଷେ ଯଶ;
କେତେ ରକ୍ତ ଢାଳେ
ଏଥିଲାଗି ନର
ହୋଇ ହିଂସା ଲୋଭବଶ ।

ଦୁର୍ବଳକୁ ମାରି
ବଡ଼ ହେବା ପାଇଁ
ଆଜ ବି ଧାଇଁଛି ନର

ଘୁଞ୍ଚ ନାହିଁ ସେହି
ପୂ ର୍ବ୍ବତନ ଅଭ୍ୟାସ
ପଶୁ ପକ୍ଷୀ ଜୀବଙ୍କର ।

ପୋଥି ପାଠ ସବୁ
ପୋଥିରେ ରହିଛି
ଶିଖିନ ମଣିଷ ତହୁଁ
ଆଜ ବି ଆପଣା
ଭିତରେ ଲଢ଼େଇ
କରୁଅଛି କହୁଁ କହୁଁ ।

ବୋଲାଉଛି ସଭ୍ୟ
ସବୁଠାରୁ ବଡ଼
ମାରଣ-ଅସ୍ତ୍ର ତିଆରି
ଏକାଥରେ ଯେଉଁ
ଆଣବିକ ବୋମା
ପାରେ ବେଶୀ ଲୋକ ମାରି ।

× × × ×

ଆରମ୍ଭ ହୋଇଲା
ପୃଥିବୀରେ ଯେବେ
ଦ୍ୱିତୀୟ ମହାସମର
ମନେ ପଡ଼େ ଦୁଃଖେ
ହେଲେ ଅଭିଭୂତ
ମହାତ୍ମା ଗାନ୍ଧୀ ଆମର ।

ନଗ୍ନହ ଜନର
ଉପରେ ଆକାଶୁଁ
ବୋମା ବରଷଣ କଥା
ଶୁଣି ତାଙ୍କ ପ୍ରାଣ
ଉଠିଥିଲା କାନ୍ଦ
ପାଇ ଗୁରୁତର ବ୍ୟଥା ।

ହିଟଲର ଠାରୁ
ଅଧିକ ନୃଶଂସ
ପୁଣି ବେଶି ବଳୀୟାର
ହୃଦୟ ବଦଳି
ପାରେ, କହିଥିଲେ
ଅହିଂସାର ଅବତାର ।

ହିଂସା ବୃତ୍ତି ଅଟେ
ପଶୁ ଜଗତର
ପ୍ରକୃତିଗତ ବିଧାନ
ମଣିଷ ଜନମ
ଲଭି ପଶୁ ସଙ୍ଗେ
କିପରି ହେବ ସମାନ !

ହିଂସା-ପଶୁବୃତ୍ତି
ବିରୁଦ୍ଧରେ ତହୁଁ
ତୋଳିଲେ ସେ ପ୍ରତିବାଦ

ଘୁଞ୍ଚାଇବା ପାଇଁ
ମାନବ ସମାଜୁଁ
ଦୁଃଖ ଭୟ ଅବସାଦ ।

ଅହିଂସା-ସମର
କଲେ ଆବିଷ୍କାର
ଅତି ଅଭିନବ ଅସ୍ତ୍ର
ନ ମାରି ଜୀବନେ
ଯୋଗାଇ ପାରେ ଯେ
ଦୀନ ଜନେ ଅନ୍ନବସ୍ତ୍ର ।

ଯୁଗ ଯୁଗ ଧରି
ଥିଲା ପରାଧୀନ
ଜନମଭୂମି ଭାରତ
ସେହି ଅସ୍ତ୍ର ବଳେ
ସ୍ୱାଧୀନତା ଜିଣି
ଚକିତ କଲେ ଜଗତ ।

ସେହି ଅସ୍ତ୍ର ବଳେ
ରୁଧିର-ବିହୀନ
ସମର ଚାଲିଲା ଦେଶେ
ଅହିଂସାର ଅଗ୍ନି
ଜଳି ଉଠିଥିଲା
ସ୍ୱାଧୀନତା ଆଣି ଶେଷେ ।

ଅହିଂସାର ଗୀତ
ଘରେ ଘରେ ପୁଣି
ଶୁଭିଲା ଚରଖା ବୁଲି
ଝାସିଲେ ଜୀବନ
ଅହିଂସା-ସମରେ
କେତେ ଧନୀ ରଙ୍କୀ କୁଳି ।

ଭୁଲିଲେ ବିଳାସୀ
ବିଳାସ ବ୍ୟସନ
ଦରିଦ୍ର ଭୁଲିଲେ ଦୁଃଖ
ସହିଲେ ସକଳ
କଷଣ ଦୂଷଣ
ବହିଲେ ହରଷ ମୁଖ ।

ନାରୀଏ ତେଜିଲେ
ଦେହର ଭୂଷଣ
ଦେଶ-ସ୍ୱାଧୀନତା ପାଇଁ
ଜାଳିଲେ ବିଦେଶୀ
ବ୍ସନ, ପିନ୍ଧିଲେ
ମୋଟା ଖଦୀ ସବୁଠାଇଁ ।

ବିଦେଶୀ ଶାସକ
କଲେ ଅତ୍ୟାଚାର
ପ୍ରହାରିଲେ ବନ୍ଦୀଘରେ

ଅହିଂସା-ସୈନିକ
ନ ଦେଖାଏ କ୍ରୋଧ
ସହେ ସବୁ ନୀରବରେ ।

ଧନ୍ୟ ଧନ୍ୟ କଲା
ଜଗତ ଦେଖି ସେ
ଅଦଭୁତ କଉଶଳ
ହସୁଥିଲେ ଯେହୁ
ବୁଝିଲେ ସେ ପଛେ
କି ଅସୀମ ତାର ବଳ ।

ହିଂସାଠାରୁ ବଳି
ଅହିଂସା ଶକତି
ବୁଝିଲେ ସକଳ ଜନ
ପାରିଲା ହଟାଇ
ମହା ପରାକ୍ରମୀ
ଯେହୁ ଇଂରାଜୀ ଶାସନ ।

ଅହିଂସାର ଡାକ
ଶୁଭିଲା ଭାରତେ
ସକଳ ନଭୃତ ସ୍ଥାନେ
ଉଚ୍ଛୁଳିଲା ଗ୍ରାମ
ବିଲ ବନ ଆଦି
ନୂତନ ଅହିଂସା-ଗାନେ ।

କୁଟୀର ପ୍ରାସାଦ
ଉଚ୍ଛୁଳ ପଡ଼ିଲା
ଶୁଣି ସେ ସଂଗ୍ରାମ ଡାକ
ହିମାଳୟ ଠାରୁ
କୁମାରିକା ଯାଏ
କମ୍ପିଗଲା ଦେଶଯାକ ।

ଉଚ୍ଛୁଳିଲା ବଙ୍ଗ
ଆସାମ ଉତ୍କଳ
ଦ୍ରାବିଡ଼ କର୍ଣ୍ଣାଟ ଦେଶ
ପଞ୍ଜାବ ବିହାର
ଗୁଜରାଟ ବମ୍ବେ
ଉତ୍ତର, ମଧ୍ୟ ପ୍ରଦେଶ ।

ଅହିଂସା-ସମରେ
ସେନାପତି ଗାନ୍ଧୀ
ଚାଲିଲେ ସବୁରି ଆଗେ
କହିଲେ, "ଅହିଂସା-
ବୃକ୍ଷରେ କଦାପି
ହିଂସା-ଗୁଳି ନାହିଁ ଲାଗେ ।

"ଗୁଳି ବନ୍ଧୁକରେ
ଦେହ ସିନା ମରେ
ଆତ୍ମା ସେ ରହେ ଅମର

“ସେ ଆତ୍ମ-ବିଶ୍ୱାସ
ଦୃଢ଼େ ଧରି ହୃଦେ
କରିବା ଆସ ସମର ।

“ହିଂସା ବଦଳରେ
ଜାତ ହୁଏ ହିଂସା
ମରେ ଅକାରଣ ପ୍ରାଣୀ;”
ନଗର ପଲ୍ଲୀରେ
ପ୍ରାସାଦ କୁଟୀରେ
ଶୁଭିଲା ଅହିଂସା-ବାଣୀ ।

କଲେ ଅକାତରେ
ଶତ ଶତ ବୀର
ଧନ ପ୍ରାଣ ବିସର୍ଜନ
ଉତ୍କଳେ ଉତ୍କଳ -
ମଣି ଗୋପବନ୍ଧୁ
ବଙ୍ଗରେ ଚିତ୍ତରଞ୍ଜନ ।

ଯୁବକ ଯୁବତି
ଦେଖାଇ ସାହସ
ଢେକଲେ ଜୀବନ ଶେଷେ
ଗଢ଼ିଲେ ଜାତିଯେ
ସେନାଦଳ, କେତେ
ଲଢ଼ିଲେ ସୈନିକ ବେଶେ ।

ଧନେ ମାନେ ଜ୍ଞାନେ
ସାର ମୋତିଲାଲ
ପୁତ୍ର କନ୍ୟା ପରିବାର
ଘେନି ସମସ୍ତଙ୍କୁ
ଅହିଂସା-ସମରେ
ହୋଇଥିଲେ ଆଗୁସାର ।

ବିହାରେ ରାଜେନ୍ଦ୍ର—
ପ୍ରସାଦ, ଗୁର୍ଜରେ
ସର୍ଦ୍ଦାର ପଟେଲ ନେତା
ବର୍ଦ୍ଦୋଲି କୃଷକ
ସଂଗଠନେ ଆଗ
ହୋଇଲେ ସମରେ ଜେତା ।

ରାଜସ୍ୱ ବୃଦ୍ଧିର
ପ୍ରତିବାଦ କରି
ବର୍ଦ୍ଦୋଲି-କୃଷକ-କୁଳ
ନ ଦେଇ ଖଜଣା
ଦୋହଲାଇ ଦେଲେ
ବିଦେଶୀ ଶାସନ ମୂଳ ।

ଚକ୍ରବର୍ତ୍ତୀ ରାଜ-
ଗୋପାଳାଚାରି ସେ
ମାନ୍ଦ୍ରାଜ-ଅଧିନାୟକ

ସେନାପତି ଡାକେ
ଆସିଲେ ରଣକୁ
ଧେନ ଅହିଂସା-ସାୟକ ।

ସକଳ ଗୁଣରେ
ଗୁଣୀ ମୋତିଲାଲ—
ତନୁଜ ଜହରଲାଲ
ଛିଡ଼ା ହେଲେ ଆସି
ସେନାପତି ପାଶେ
ଭରତ-ମାତା-ଦୁଲାଲ ।

ଶଇଶବେ ଯେହୁ
ହୋଇଲେ ଲାଳିତ
ରାଜାର ବିଳାସସୁଖେ
ଦେଶ ପାଇଁ ବନ୍ଦୀ-
ଶାଳ ସେ ବରିଲେ
ସହିଲେ କଷଣ ବୁକେ;

ମୋତିଲାଲଙ୍କର
ଆନନ୍ଦ ଭବନ
ରାଜପ୍ରାସାଦରୁ ବଳି
ତହିଁ ଜନ୍ମ ଲଭି
ଦେଶପାଇଁ ଦେଲେ
ସବୁ ସୁଖେ ଜଳାଞ୍ଜଳି ।

ଭଗିନୀ ବିଜୟ-
ଲକ୍ଷ୍ମୀ, ପୁଣି କୃଷ୍ଣା,
କମଳା ନେହେରୁ ଜାୟା
ଜନନୀ 'ସ୍ୱରୂପା'
ରାଜରାଣୀ ସମା
ଛୁଟାଇଲେ ଦେହୁଁ ମାୟା ।

ଜାତିର ଦୁଲାଳ
ଜବାହରଲାଲ
ଦେଖାଇଲେ ଯେଉଁ ପଥ
ମାତା ପିତା ଭଗ୍ନୀ
ପତ୍ନୀ କଲେ ତାକୁ
ଜୀବନର ମହାବ୍ରତ ।

ହେଉଥିଲା ଭ୍ରମ
ଯବେ ଯାହାଙ୍କର
ଚଢ଼ି ଗାଡ଼ି ଘୋଡ଼ା ଯାନେ
ପାଦେ ବୁଲି ଦେଶ—
ବାସୀଙ୍କ ସଙ୍ଗତେ
ବାହାରିଲେ ସେହିମାନେ ।

ଧୂଳିରେ ମଳିନ
ହୋଇଲା ଶରୀର
ସହିଲେ ବରଷା ଖରା

ହଟାଇବା ପାଇଁ
ବିଦେଶୀ ଶାସନ
ହେଲେ ସବେ ଆତ୍ମହରା ।

ପଞ୍ଜାବ-କେଶରୀ
ଲାଲା ଲଜପତ
ସାହସେ ଅତୁଳନୀୟ
ପୁଲିସ ଲାଠିରେ
ହରାଇଲେ ପ୍ରାଣ
ହେଲେ ଭାରତର ପ୍ରିୟ ।

ବିଦେଶୀ ଶାସକ
କଲେ ଯେତେ ବନ୍ଦୀ
ଚଳାଇଲେ ଲାଠି ଗୁଳି
ହିଂସା ବଦଳରେ
ପ୍ରତିହିଂସା କଥା
ଗଲେ ତ ସକଳେ ଭୁଲି ।

ଅହିଂସା-ମନ୍ତ୍ରଟି
ହେଲା ଜୀବନର
ଏକମାତ୍ର ମହା ଧ୍ୟାନ
ସେହି ମନ୍ତ୍ରବଳେ
ଭାରତ ସନ୍ତାନ
ସବେ ହେଲେ ବଳୀୟାନ ।

ସେହି ମନ୍ତ୍ରବଳେ
ଅଶୋକ ରାଜନ
ଜିଣିଥିଲେ ସାରେ ଧରା
ଛରବାଣ୍ଟ ଜନ୍ତୁ-
ଠାରୁ ହୃଦସ୍ୱର
ଜୟ ବଡ଼ ହେଲା ପରା !

ସେହି ମନ୍ତ୍ରବଳେ
ବୁଦ୍ଧ ଯୀଶୁ ଆଜ
ଅନନ୍ତ ଅମର ହୋଇ
ସେହି ମନ୍ତ୍ର ଗାନ୍ଧି
ଉଚାରି ଭରତୁଁ
ଦେଲେ ସବୁ ପାପ ଧୋଇ ।

ଜାଗିଲା ଭାରତ
ନୂତନ ତେଜରେ,
ଉଠିଲା ସୁଖର ରବ,
ଜଳୁଟି ଉଠିଲା
ସବୁରି ନୟନେ
ନବ-ସ୍ୱାଧୀନତା-ଛବି !

ନୂତନ ଜୀବନ
ଲଭିଲା ସତେ କି
ଭାରତର ଜଳସ୍ଥଳ !

ଅହିଂସା-ଅସ୍ତ୍ରରେ
ବିଦେଶୀ ଶାସନ
ଶେଷେ ହେଲା ଟଳମଳ ।

ଭାରତର ଶ୍ରେଷ୍ଠ
ନେତାଙ୍କ ହସ୍ତରେ
ସମର୍ପି ଶାସନ ଭାର
ଛେଳିଲେ ବିଦାୟ
ଇଂରେଜ ଏ ଦେଶୁଁ
ଭାବ ରଖି ବନ୍ଧୁତାର ।

ଉଣେଇଶ ଶତ-
ସତଚାଳିଶ ମସିହା
ଅଗଷ୍ଟ ପନ୍ଦର ଦିନ
ଅହିଂସା ଯୁଦ୍ଧର
ହୋଇଥିଲା ଜୟ
ଭାରତ ହେଲା ସ୍ୱାଧୀନ ।

ମହାତ୍ମା ଗାନ୍ଧିଙ୍କ
ପ୍ରିୟତମ ଶିଷ୍ୟ
ନେହେରୁ ଶ୍ରୀ ଜବାହର
ପ୍ରଧାନ ସଚିବ
ହୋଇ କରୁଛନ୍ତି
ସୁଶାସନ ଭାରତର ।

ସ୍ୱାଧୀନତା ପରେ
ଅହିଂସା ଯୁଦ୍ଧର
ହୋଇ ତ ନାହିଁ ବିରତି
ଚଳାନ୍ତି ତାହାକୁ
ଜବାହରଲାଲ
ଭାରତର ସେନାପତି ।

ଅଶିକ୍ଷା ଦାରିଦ୍ର୍ୟ
କରିବାକୁ ଦୂର
ଲାଗିଛୁ ସମର ପୁଣି
ଶୋଷଣ ମାଝରେ
କେହି କାହା ରକ୍ତ
ନ ପିଇବେ ଆଉ ଝୁଣି ।

ପର ତଣ୍ଡି ଚିପି
ହେବେ ନାହିଁ ଧନୀ
କେହି ଭାରତଭୂମିରେ
ବୋଲାଇବେ ନାହିଁ
ପଣ୍ଡିତ ପବନ
ପାଦ ରଖି ଆନ ଶିରେ ।

ଆନକୁ ଅଛୁଆଁ
ମୂରୁଖ ଗରିବ
ନ କରି ଥୋକାଏ ଲୋକ

ଆପେ ଆପଣରେ
ରହୁ ପର ପାଇଁ
ନ ଆଣିବେ ଦୁଃଖ ଶୋକ ।

ପୋକ ମାଛି ପରି
ନ ମରିବେ କେହୁ
ମହାମାରୀ ମଡ଼କରେ
ବଳକର ସ୍ୱାସ୍ଥ୍ୟ
ସମ୍ପଦ ଅତୁଳ
ପୂର ପଲ୍ଲୀ ଘରେ ଘରେ ।

କେତେ ନୂଆ ନୂଆ
ପଥ, ବନ୍ଧ, ପୋଲ
କଳ କାରଖାନାମାନ
ଦେଶ-ବାସୀ ଘମେଁ
ଏହୁ ଦେଶ ଧନେ
ହେଉଛି ଆଜ ନିର୍ମାଣ ।

ସବୁରି ସମାନ
ଦାବୀ ଅଛି ତହିଁ
ସବୁରି ସମାନ ଅଂଶ
ପୁରୁଷାନୁକ୍ରମେ
ଭୋଗ କରୁଥିବେ
ଦେଶବାସୀଙ୍କର ବଂଶ ।

ଏହି ଆଦରଣ
ଫଳାଇବା ପାଇଁ
ଲାଗିଛୁ ଅହିଂସା-ରଣ
ସେହି ରଣେ ସେନା-
ପତି ଜବାହର
ଲଢୁଛନ୍ତି ପ୍ରାଣପଣ ।

ଫଉଜ ତାଙ୍କର
ଚାଲିଛନ୍ତି ପଛେ
କୋଟି କୋଟି ଦେଶବାସୀ
ଯହିଁ ଗଲେ ତହିଁ
ଲକ୍ଷ ଲକ୍ଷ ଲୋକ
ରୁଣ୍ଡ ହେଉଛନ୍ତି ଆସି ।

ଲକ୍ଷ ଲକ୍ଷ ଆଖି
ଚାହିଁଛି ତାହାଙ୍କୁ
ସର୍ବଦା ଆଶାୟୀ ହୋଇ
କେଉଁ ନୟନରେ
ହାସ ଉଠେ ଫୁଟି
କାହିଁ ଲୁହ ଯାଏ ବୋହି ।

ଦୁଃଖୀ ଜନ ଦୁଃଖ
ଘୁଞ୍ଚାଇବା କର୍ମେ
କେହି ବାଧା ସୃଷ୍ଟି କଲେ

ଗୃଳିଚ୍ଛ ଲଢ଼େଇ
ଜଣିବାକୁ ତାକୁ
ଅହିଂସା ଉପାୟ ବଳେ ।

× × × ×

ପ୍ରାଚୀନ ସଭ୍ୟତା
ଘୋଷେ ଜଗ୍ନ ଯେଉଁ
ଏସିଆ ମହାଦେଶର
ବଦେଶୀ ଶାସକ
କେତେକାଳୁଁ ତହିଁ
ରଖିଥିଲେ କର ଘର ।

ଏବେ ଏସିଆର
ସବୁ ଦେଶ ଲୋଡ଼େ
ସ୍ୱାଧୀନ ହୋଇବା ପାଇଁ
କେତେ ଦେଶ ଲଢ଼ି
ହୋଇଛୁ ସ୍ୱାଧୀନ
ଆଜ କେତେ ହୋଇ ନାହିଁ ।

ସେଥି ଲାଗି ଯୁଦ୍ଧ-
ଭୟ ଉପୁଜଛୁ
ଥରୁଛୁ ପୃଥିବୀମୟ
କେତେ ଘରଦ୍ୱାର
ଜଳ ପୋଡ଼ିଯିବ
କେତେ ହେବ ଲୋକ କ୍ଷୟ !

ଜାତି କର୍ଣ୍ଣଧାର
ଜବାହରଲାଲ
ଅହିଂସା-ଅସ୍ତ୍ରକୁ ବାଛି
ହିଂସା ବିରୁଦ୍ଧରେ
କରୁଛନ୍ତି ରଣ
ଭାରତର ସବ୍ୟସାଚୀ।

କହୁଛନ୍ତି, ଏକ
ଦେଶ ପରେ ଆନ
ଦେଶର ଯେ ଅଧିକାର
ସେ ଅନ୍ୟାୟ କେବେ
ନ ପାରିବେ ସହି,
ଘୋଷିଛନ୍ତି ବାରମ୍ବାର ।

ଗୋଟିଏ ଦେଶର
ଇଚ୍ଛା ବିରୁଦ୍ଧରେ
ଆନର ଜବରଦସ୍ତି
ବରଦାସ୍ତ କେବେ
ନ ପାରିବେ କରି
ଭାରତ-ପ୍ରଧାନ-ମନ୍ତ୍ରୀ ।

ହେଉ ଯେତେ ଶକ୍ତି-
ଶାଳୀ, ଯେଉଁ ଦେଶ
ଲଢ଼ାଇବ ଆଗ ଯୁଦ୍ଧ

ସମର୍ଥନ ତାଙ୍କୁ
ନ ଦେବ ଭାରତ
ହେଲେ ହେଁ ତାର ବିରୁଦ୍ଧ ।

ଅହିଂସା-ଅସ୍ତ୍ରରେ
ହେବ ସବୁ ଯୁଦ୍ଧ
ଜିଣି, ଏ ବିଶ୍ୱାସ ଧରି
ଅହିଂସା କେବଳ
ପାରେ ପୃଥିବୀରେ
ଶାନ୍ତିର ପ୍ରତିଷ୍ଠା କରି;

ସେହି ଶାନ୍ତି ପାଇଁ
କରନ୍ତି ଲଢ଼ାଇ
ଅହିଂସାର ସେନାପତି
ବଢ଼ାଇ ମହତ
ଧରଣୀରେ ଆଜ
ନବୀନ-ଭାରତ-ରଥୀ ।

ଏସିଆର ପୂର୍ବ-
ପ୍ରାନ୍ତେ ଇଣ୍ଡୋଚୀନ
କୋରିଆ ଦୁଇଟି ଦେଶ,
ବିଦେଶୀ କବଳେ
ପଡ଼ି ଯୁଦ୍ଧ କଲେ
ଧନ ଜନ କରି ଶେଷ ।

ବରଷ ବରଷ
ଧରି ସେ ଲଢ଼େଇ
ଚାଲିଲା ଅତି ଘୋଷଣ
ସେ ଦେଶର ଲୋକେ
ସ୍ୱାଧୀନ ହେବାକୁ
କରିଥିଲେ ମୃତ୍ୟୁ ପଣ ।

ସେ ଦୁଇ ଦେଶରେ
ଶାନ୍ତି ଆଣିବାକୁ
ଆଣିବାକୁ ସ୍ୱାଧୀନତା
ଚାହୁଁଛି ଭାରତ,
କହିଥିଲେ ପରା
ପ୍ରଧାନ ମନ୍ତ୍ରୀ ଏ କଥା ।

ଉଦ୍ୟମେ ତାଙ୍କର
ସମ୍ଭବିଲା ଶାନ୍ତି
ଇନ୍ଦୋଚୀନ କୋଣଆରେ
ହିଂସା ବିରୁଦ୍ଧରେ
ଅହିଂସାର ବଳ
ଅଧିକ ହେଲା ସଂସାରେ ।

ପୃଥିବୀ ଉପରେ
ଅହିଂସା-ପ୍ରଭାବ
ପଡ଼ୁଅଛି ଏହିପରି

ବିଶ୍ୱ ଶାନ୍ତି ପାଇଁ
ଏହି ଅସ୍ତ୍ର ପରେ
ବିଶ୍ୱାସ ଉଠୁଛି ବଢ଼ି ।

ନିରସ୍ତ୍ର ଭାରତ
ଏହି ଅସ୍ତ୍ର ଧରି
ଜୟୀ ଆଜି ଭୂମଣ୍ଡଳେ
ମହା ପରାକ୍ରମୀ
ଶତ୍ରୁକୁ ତାହାର
ଭୟ ନାହିଁ କାହିଁ ପଳେ ।

ବିଶ୍ୱ-ବଳଶାଳୀ
ଶତ୍ରୁକୁ ଜିଣିବ
ଏ ବିଶ୍ୱାସ ତାର ଅଛି
ଚିର-ଶାନ୍ତିହୀନ
ଜଗତ-ବକ୍ଷରେ
ଅହିଂସା-ସମର ରଚି ।

# ସିପାହୀ-ବିଦ୍ରୋହ

ମହୋଦଧି ଜଳୁଁ ଉଇଁଲେ
ରବି ଦିଗନ୍ତ କୂଳେ
ରକତର ଛଟା ଚୁମ୍ବିଲା
ବଡ଼ ଦେଉଳ ଚୂଳେ ।
ଉଡ଼ିଲା ତ୍ରିବର୍ଣ୍ଣ ପବନେ
ନୀଳଚକ୍ର ଉପରେ
ପତିତପାବନ ବାନା ସେ
ଦୀନ-ବେଦନା ହରେ ।
ଦେବଭୂମି ପୁଣ୍ୟ ଉତ୍କଳେ
ଶତ ଶତ ବରଷ
ଉଡ଼ି ସେ ଉପରେ ଘୋଷୁଛି
ଏହି ଜାତିର ଯଶ ।
ଘୋଷୁଛି ଭାରତ ମଣ୍ଡଳେ
ଜୟ ଉତ୍କଳ-ମହୀ
ସବୁ ହିନ୍ଦୁଜାତି-ଜନତା
ମୁଣ୍ଡ ନୁଆନ୍ତ ଯହିଁ ।

× ' × × ×

ଫିଟିଗଲା ସିଂହଦୁଆର
ଦେବଦର୍ଶନ ଲାଗି
ମଙ୍ଗଳଆରତି-କାହାଳୀ-
ଘଣ୍ଟା ଉଠିଲା ବାଜି ।

ସିଂହଦ୍ୱାରେ ଯେଉଁ ଅରୁଣ-
ସ୍ତମ୍ଭ ହୋଇଛି ଉଭା
ତାହାର ପାରୁଶେ ଯୋଡ଼ଣ
କର କିଏ ସେ ଯୁବା ?
ବୟସ ଅନ୍ଦାଜ ଷୋଳଶ,
ଦେହେ ଝଟକେ ଜ୍ୟୋତି
ଅପଲକ ନେତ୍ରେ ଚାହିଁଛି
ନୀଳଚକ୍ରର ପ୍ରତି ।
ଭାବୁଛି ଭାବନା କ ଅବା
ରହି ଏକ ଧିଆନେ
ଜଣାଣ କରୁଛି ଗୁହାରି
କିବା ସେହି ତା' ଜାଣେ ।
ପତିତପାବନ ବାନାରୁ
ଯୋଗେ ଛିଡ଼ିଲା ଖଣ୍ଡେ
ଆଚମ୍ବିତେ ଉଡ଼ି ପଡ଼ିଲା
ସେହି ପୁରୁଷ ମୁଣ୍ଡେ ।
ଲାଗିଲା ବଚନ ଜଗତ-
ନାଥ ଆଶିଷ ପାଇ
ମଥାରୁ ଆଣି ସେ ବାନାକୁ
ଧରେ ହୃଦେ ଲଗାଇ ।
ମଙ୍ଗଳଆରତି-ଦର୍ଶନ
ଲାଗି ପଶେ ମନ୍ଦିରେ
ବାଇଶି ପାହାଚ ଉଠଇ
ପାଦ ପକାଇ ଧୀରେ ।

ମନ୍ଦିରସେବକ ସକଳେ
ଗୁଡ଼ ବିଅନ୍ତି ବାଟ
କେହି ବା 'ଚନ୍ଦନ ହଜୁରି'
ବୋଲି ମାରେ କୁହାଟ ।
କେହି ବା 'ଚନ୍ଦନ ହଜୁରି'
ଭୁକ ଭୁକ ଡାକରେ
ଯାଆନ୍ତି ଚାଲି ସଭିଏ
ପ୍ରଭୁ ନାହାନ୍ତି ଆଗେ ।

× × × ×

ଜଗନ୍ନାଥଙ୍କର ସେବକ-
ଶିଶୁ ମଙ୍ଗଳରାଜ
ତାଙ୍କ ନାମ 'ବୃକ୍ଷିଖୁଣ୍ଟିଆ'
ଯୋଦ୍ଧା ମଧ୍ୟରେ ଗଣି;
ଦୃଷ୍ଟିବାକୁ ଧାଏଁ ସକଳ
ଦ୍ରବ୍ୟ ପିଲା ଦିନରେ
ତେଣୁ ମାତାପିତା ଡାକନ୍ତି
'ବୃକ୍ଷି' ଅତି ଆଦରେ ।
ଖୁଣ୍ଟିଆ ସେବକ କୁଳରେ
ଜନ୍ମ ମହାନ ବୀର
ଜ୍ଞାନେ ମାନେ ଦାନେ ଉଦାର
ଗୁଣେ ଅଟନ୍ତି ଧୀର ।
ଜଗନ୍ନାଥଯାତ୍ରୀ ଯାହାଙ୍କ
ପାଦେ ନୁଆନ୍ତି ମଥା

ସେବକରୂପରେ ଭକତି
କରେ ହିନ୍ଦୁ-ଜନତା;
ପାଇଛନ୍ତି କାଲି ଖବର
ଗୁପ୍ତଚର ସେ ଅତି,
ଭାରତ ଉପରେ ପଡ଼ୁଛି
ଆସି ଘୋର ବିପତ୍ତି ।
ବିଦେଶୀ ଇଂରେଜ ଶାସନ
ବିରୁଦ୍ଧରେ ଭାରତ
ଦେଖାଇ ବିକ୍ରମ ଉଠିଛି
ଦମ୍ଭେ ହୋଇ ଜାଗ୍ରତ ।
ଭାରତର ସବୁ ସିପାହୀ
ହିନ୍ଦୁ ପଠାଣ ଜାତି
ତଡ଼ିବେ ବିଦେଶୀ, ସେ ଲାଗି
ମିଳି ହୋଇଲେ ସାଥୀ ।

ସଇନ-ଛାଉଣି ଭିତରେ
ଜଳି ବିଦ୍ରୋହ-ନିଆଁ
ଦେଶର ସକଳ ସ୍ଥାନକୁ
ମେ ତ ମାରୁଛି ଡିଆଁ ।
ପଠାଣ ମୋଗଲ ସିପାହୀ
ରାଜପୁତ ମରହଟ୍ଟା
ବିଦେଶୀ ଗୋରାଙ୍କୁ ମାରନ୍ତି
କରି କି ହଟହଟା !
ବିଦେଶୀ ଆଦେଶ ମଣନ୍ତି
ଯେଣୁ ସେ ଅପମାନ

ସ୍ୱାଧୀନ ଭାରତ-ସନ୍ତାନ
ହିନ୍ଦୁ ମୁସଲମାନ ।

× × × ×

ମରହଟ୍ଟା ରାଜ୍ୟ ଝାଁସିର
ରାଣୀ ଶ୍ରୀ ଲକ୍ଷ୍ମୀବାଈ
ଚନ୍ଦନ ହଜୁର ପାଶକୁ
ବାର୍ତ୍ତା ଦେଲେ ପଠାଇ ।
ରାଣୀଙ୍କର ସ୍ୱାମୀ ତନୁଜ
ହାରିଛନ୍ତି ଜୀବନ
ଝାଁସିଗଡ଼ ପାଇଁ ଏବେ ଯେ
ରାଣୀ କରନ୍ତି ରଣ ।
ନୋହିଲେ ଇଂରେଜ-ଫଉଜ
ଜିଣି ପଶିବେ ଗଡ଼
ସ୍ୱାଧୀନତାଠାରୁ ତାହାଙ୍କ
ପ୍ରାଣ ନୁହେ ତ ବଡ଼ ।
ପଢ଼ି ସେ ଚିଟାଉ ହଜୁର
ହୃଦ ଉଠିଲା ଜଳ
ଝାଁସି ଅଭିମୁଖେ ମନସ୍ଥ
କଲେ ଯିବାକୁ ଚଳ ।
ଲକ୍ଷ୍ମୀବାଈଙ୍କର ଜନକ
ମେରୋପନ୍ତଙ୍କ କଥା
ମନେପଡ଼ି ତାଙ୍କ ମରମେ
ଦେଲା ଦାରୁଣ ବ୍ୟଥା ।

ଆସିଥିଲେ କ୍ଷେତ୍ରେ ଯେବେ ସେ
ମରହଟ୍ଟା ବରିଷ୍ଠ
ହଜୁରଙ୍କ ସଙ୍ଗେ ବନ୍ଧୁତା
ବାନ୍ଧିଥିଲେ ଘନିଷ୍ଠ ।
ଝାଁସିର ନରେଶ ସହିତ
ଲକ୍ଷ୍ମୀଙ୍କର ବିବାହ
ହଜୁରଙ୍କ ମନେ ପଡ଼ିଲ୍
ହେଲ୍ ଅନ୍ତରଦାହ ।

ନିମନ୍ତ୍ରଣ ପାଇ ବିବାହେ
ଦେଇଥିଲେ ସେ ଯୋଗ
ଦେଖିଥିଲେ ଝାଁସି ରାଜ୍ୟର
ଐଶ୍ୱର୍ଯ୍ୟ ବିଳାସଭୋଗ ।

ବିସ୍ମରିଲେ ଆଜ ହେବଣି
ତାହା କି ସୁରଖାର !
ଲକ୍ଷ୍ମୀବାଈ ପାଶେ ଯିବାକୁ
ତହୁଁ ହେଲେ ବାହାର ।

ଧଇଲେ ପତିତପାବନ—
ବାନା ତୁଳସୀ ଧଣ୍ଡା
ଲଢ଼େଇକୁ ହେଲେ ତିଆର
ଜଗନ୍ନାଥଙ୍କ ପଣ୍ଡା ।

× × × ×

ବହେ ଅନୁକୂଳ ବାଆ
ଗିରବନ ପୂର

ଚଳିଛନ୍ତି ଅଶ୍ୱପୃଷ୍ଠେ
ଚନ୍ଦନ ହଜୁର ।
ନ ଥିଲା ସେ କାଳେ ରେଳ—
ପଥ ଦେଶେ ହୋଇ
ପ୍ରାକୃତିକ ଶୋଭା ତାଙ୍କ
ମନ ନିଏ ମୋହି ।
ବହେ କାହିଁ କୁଳୁ କୁଳୁ
ଶୀତଳ ଝରଣା
କେଉଁ ଭୀଷଣ ପ୍ରପାତୁଁ
ଉଠେ ଜଳକଣା ।
ରବିତେଜେ କରେ ସୃଷ୍ଟି
ଶତ ଇନ୍ଦ୍ରଧନୁ
ଦୂର କରି ପଥଶ୍ରାନ୍ତି
ପଥିକର ମନୁଁ ।
କେଉଁ ନିବିଡ଼ ଅରଣ୍ୟେ
ସଦା ଅନ୍ଧକାର
ମଧ୍ୟାହ୍ନରେ ଶଶିଭ୍ରମ
କରଇ ସଞ୍ଚାର ।
ଚକିତ ହରିଣୀ ଦଳ
ଉଭା ହୋଇ କାହିଁ
ନିର୍ବୋଧ ନୟନେ ଦୂରୁଁ
ରହିଛନ୍ତି ଚାହିଁ ।
ପୁଚ୍ଛ ଟେକି ଧୀରପଦେ
ନାଚନ୍ତି ମୟୂର

ଉପମା ରାଜ୍ୟକୁ ଅବା
କରିଦେଇ ଦୂର ।
କେଉଁ ବନେ ବ୍ୟାଘ୍ର ସିଂହ
ଭୀଷଣ ଗର୍ଜନ
ଶୁଣି ଦାମ୍ଭିକର ଦମ୍ଭ
ହୁଅଇ ଭଗନ ।
ନାନା ଦୁର୍ଗମ ସଙ୍କଟ-
ପଥ ଅତିକ୍ରମି
ଦେଖିଲେ ବିଚିତ୍ର ଦୃଶ୍ୟ
ବହୁ ଦେଶ ଭ୍ରମି;
ଅବଶେଷେ ପ୍ରବେଶିଲେ
ହଜୁର ଝାଁସିରେ
କର୍ଣ୍ଣରେ କୁଣ୍ଡଳ ଶିର—
ସ୍ତାଣ ଶୋଭେ ଶିରେ ।
ପନ୍ଦର ବର୍ଷ ବୟସେ
ଝଟକେ ଯୌବନ
କସରତ ଲଢ଼ି ବାହୁ
ବର୍ତ୍ତୁଳ ଶୋଭନ ।
ଖଣ୍ଡା ବନ୍ଧୁକ ଲାଠିରେ
ସମସ୍ତଙ୍କୁ ବଳ
ପାଦ ତଳେ ଚପି ଯେହ୍ନେ
ଶତ୍ରୁ ପାରେ ଦଳ ।

× × × ×

ଝାଁସି ଅଧିବାସୀ ଚହ୍ନିଲେ
ଜଗନ୍ନାଥ ପଣ୍ଡାଙ୍କୁ
ଦେଖିପାରେ ସେହ୍ନ ସହଜେ
ଏକା ହାତଗଣ୍ଡାଙ୍କୁ;
କଣ ସନାମନା ପାଉଛନ୍ତି
ନେଲେ ରାଜ-ନବରେ
ଲକ୍ଷ୍ମୀବାଈ ତହୁଁ ବନ୍ଦିଲେ
ପାଦ ଭକତ ଭରେ ।
ଛଳ ଛଳ ଦୁଇ ନୟନ
ମୁଖ ମଳନ ଅତ
"ଭାଗ୍ୟହୀନା ମୁହିଁ" ବୋଲନ୍ତ
ତାଙ୍କୁ ବନୟେ ସତ ।
"ହରାଇଲ ପତ ପୁତ୍ରଙ୍କୁ
ଆପେ ଜୀବନ ଧଣ
"ଶୂନ୍ୟ ଏ ପ୍ରାସାଦେ ସାହା ମୁଁ
ଆଗ ନ ଗଲ ମର ।
"ପାଇ ନମନ୍ତ୍ରଣ ପିତାଙ୍କ -
ଠାରୁ ମୋର ବବାହେ
"ଆସିଥିଲ ଥରେ ଝାଁସିକୁ
ସେହ୍ନ କାଳେ ପଣ୍ଡା ହେ !
"ଆଜ ନମନ୍ତ୍ରଣ କଲ ମୁଁ
ଦେଖ ବୈଧବ୍ୟ ମମ
"ହତଶିରୀ ହୋଇ ପଡ଼ିଛ
ଝାଁସି ରାଜ୍ୟ ଉତ୍ତମ ।

"କାନ୍ଦୁଛି ଭାରତ-ଜନନୀ
ମହା ବିପଦେ ପଡ଼ି
"କିଏ ସେ ଶତ୍ରୁକୁ ଜିଣିବ
ଆଜି ସମରେ ଲଢ଼ି !
"ଅବଳା ନାରୀ ମୁଁ ଉପାୟ
କିଛି ନ ପାଏଁ ଖୋଜି
"ଡାକ ଆଣିଅଛି ତେଣୁ ମୁଁ
ଦୂରୁଁ ତୁମ୍ଭଙ୍କୁ ଭଜି ।"
ଶୁଣନ୍ତି ଚନ୍ଦନ ହଜୁର
"ଆଗୋ ସତୀ ସାବତୀ,
"ତୁମ୍ଭପରି ନାରୀ ବକ୍ଷରେ
ଧରି ଧନ୍ୟା ଧରଣୀ ।
"ହରାଇଛ ଯେଉଁ ପତିଙ୍କୁ
ଆଉ ପାଇବ କାହିଁ !
"ତୁମ୍ଭ ବୀରପୁତ୍ର ସମାନ
ବୀର ମିଳିବେ ନାହିଁ ।
"ତୁମ୍ଭ ବୈଧବ୍ୟରେ ବିଧବା
ଝାଁସି ହୋଇଛି ଆଜ
"ପୁତ୍ରହୀନ ସମ ସବୁରି
ହୃଦ ପଡ଼ୁଛି ଭାଜ ।
"ହରାଇଛ ଜଣେ ପୁତ୍ରଙ୍କୁ
ପୁଣି 'ଛନ୍ତି ବହୁତ
"ଝାଁସି-ରାଇଜର ପରଜା
ସବୁ ତୁମ୍ଭର ସୁତ ।

"ଆବର ଅଛି ମୁଁ ଅଧମ
ପୁତ୍ର, ଶୁଣ ଜନନ !
"ଜଗନ୍ନାଥ-ଧାମୁଁ ଆସିଛି
ଧାଇଁ ଝାଁସି-ଅବନୀ ।
"ଜଗନ୍ନାଥ-ସେବା ତେଜି ଗୋ
ତବ ସେବା ସକାଶ
"ଦେଶସେବା ପୁଣ୍ୟ ଅର୍ଜିବି,
ତେଣୁ ଆସିଛି ଦାସ ।
"ଉଠ ସାଞ୍ଜୁ ପିନ୍ଧ ଜନନ,
ଧର ଖଡ଼ଗ ହାତେ
"ଜିଣିବା ଶତ୍ରୁଙ୍କୁ ଅବଶ୍ୟ
ଆମେ କାଲି ପ୍ରଭାତେ ।
"କାଳବଳେ ସର୍ବେ ମରନ୍ତେ
ପଡ଼ି ସନ୍ତାନ ତବ
"ମରିବେ ଝାଁସିର ପରଜା
ପୁଣି ଧନେ ସରବ ।
"ତଥାପି ଜୀଇଁବ ଦେବି ଗୋ
ସଦା ତାଙ୍କ ଭାରତ
"କଦାପି ମରିବ ନାହିଁ ତ
ତୁମ୍ଭେ ପରମ ସତ୍ୟ ।
"ମରିବ ନାହିଁ ତ ରମଣୀ—
କୁଳେ ତବ ଗାରିଭ
"ତୁମ୍ଭ ଯଶ ଗାଇ ଜୀଇଁବ
ଭବିଷ୍ୟତ ଭାରତ ।

"ଭାରତ-ସ୍ୱାଧୀନ-ସଂଗ୍ରାମେ
ତୁମ୍ଭେ ପ୍ରଥମ ନାୟୀ
"ଢାଳିବ ସମରେ ଅବିରତ—
ଦେହୁଁ ରୁଧିର-ବାରି ।
"ବିଦେଶୀ ଶାସନ ଦନେ ତ
ଦେଶୁଁ ନେବ ବିଦାୟ
"ରହିଯିବ ଇତିହାସରେ
ଲେଖା ତବ ଅଧ୍ୟାୟ ।
"ସବୁଠାରୁ ହେବ ଉଜ୍ଜ୍ୱଳ
ତାହା ମହତ ଅତି
"ଶୋଭିଲ ଯୁଦ୍ଧବେଶେ ଘୋଟକ-
ପୃଷ୍ଠେ ହେ ମହାସତି !"

× × × ×

ବାଜେ ଯୁଦ୍ଧବାଜା
ଝାଁସିର ପରଜା
ଉଠିଲେ ମାତି
ହୋଇ ସଜବାଜ
ଚଳିବେ ରଣକୁ
ପାହିଲେ ରାତି ।
ଲାଗିଅଛି ରଣ
ଭାରତ-ପ୍ରାଙ୍ଗଣ
ରୁଧିରମୟ

ସବୁଠାରେ ଏବେ
ଦେଖାଉଛୁ କେବଳ
ସ୍ୱଦେଶୀ-ଷଣ୍ଡ ।
* 'ଶତଲେଜ' ଠାରୁ
'ନର୍ମଦା' ପର୍ଯ୍ୟନ୍ତ
ବିଦ୍ରୋହ-ବହ୍ନି
ଉଠିଅଛୁ ଜଳି
ଯେସନ, ଗୀତରେ
କୋଷ୍ଟବ ବର୍ଣ୍ଣି ।
ମିରଟ ସିପାହୀ
ସବୁର ଆଗରେ
ଉଠିଲେ ତେଜ
ଭାଙ୍ଗି ବନ୍ଦୀଘର
ମୁକତ କଲେ ସେ
ଯେତେ କଏଦୀ;
ତାଙ୍କ ହାତେ ଯେତେ
ଗୋରା-କର୍ମଚାରୀ
ଖାଇଲେ ହଣା
, କେତେ ଘର ପୁଣି
ଜଳିଗଲା, ତାହା
ନାହିଁ ତ ଜଣା ।

---

* ଶତଲେଜ ଓ ନର୍ମଦା ନଦୀଦ୍ୱୟ ଭାରତର ଉତ୍ତର ଏବଂ ଦକ୍ଷିଣରେ ଅବସ୍ଥିତ ।

ଦିଲ୍ଲୀ ଲାଲକିଲ୍ଲା
ଉପରେ ବାଜିଲା
ବିଜୟ-ବାଜା
ଶେଷ ଥର ପାଇଁ
ବାହାଦୁର ଶାହ
ହୋଇଲେ ରାଜା ।
ଶେଷଃଥର ପାଇଁ
ମୋଗଲ ରାଜତ୍ୱ
ଉଠିଲା ଉଇଁ
ନାଚିଗଲା ପୁଣି
ଗୃହ୍ଣେଁ ଗୃହ୍ଣେଁ ଦିଲ୍ଲୀ-
ମୃତ୍ତିକା ଛୁଇଁ ।
ବ୍ୟାପିଲା ବିଦ୍ରୋହ
ଉତ୍ତର-ଭାରତେ
ବହୁ ସ୍ଥାନରେ
ରାଜପୁତାନାର
ନାସିରାବାଦରେ
କାଶୀ ନଗରେ ।
ଲକ୍ଷ୍ନୌ କାନପୁର
ବିହାର ବେରେଲି
ସକଳ ସ୍ଥାନେ
ଲଢ଼ିଲେ ସିପାହୀ
ବିଦେଶୀ ସହିତ
ଜୀବନ-ଦାନେ ।

କାନପୁର ଠାରେ
ମରହଟ୍ଟା ବୀର
ନାନା ସାହେବ
ନିର୍ମମ ଗୁଣରେ
କିଏ ପୁଣି ତାଙ୍କ
ସମାନ ହେବ !

ଶତ ଶତ ଗୋରା
ନାରୀ ପୁରୁଷଙ୍କୁ
କଲେ ସେ ହତ
* ବିବିଗଡ଼ଠାରେ
ଅଛି ସେହି ସ୍ମୃତି
ଆଜି ପର୍ଯ୍ୟନ୍ତ ।

ତାଙ୍କ ବନ୍ଧୁବର
ତାନ୍ତିଆଟୋପି ସେ
ସାହସୀ ବୀର
ପାଉଥିଲେ ସୁଖ
କାଟିବାରେ ଖାଲି
ବିଦେଶୀ-ଶିର ।

ଝାଁସି ରାଣୀ ସଙ୍ଗେ
ମେଣ୍ଟ ବାନ୍ଧି ସେ ତ
କଲେ ଲଢ଼ାଇ

* କାନପୁର ସହରର ବିବିଗଡ଼ ଏହି ସ୍ମୃତି ବହନ କରୁଛି ।

ଲଢ଼ୁଥିଲେ ଆମ
ଚନ୍ଦନ ହଜୁର
ସଙ୍ଗତେ ଥାଇ ।

× × × ×

ପୁରୁଷ ବେଶରେ ଘୋଟକ
ପୃଷ୍ଠେ ଝାଁସିର ରାଣୀ
ଲଢ଼ନ୍ତ ଭୀଷଣ, ରମଣୀ
ବୋଲି ନ ହୁଏ ଜାଣି ।
କୋଟା ଓ ମୋରାର ନାମକ
ଦୁଇ ସ୍ଥାନରେ ଲଢ଼ି
ବିଦେଶୀ ସଇନ ଆଘାତେ
ଶେଷେ ଗଲେ ସେ ପଡ଼ି ।
ଛାଡ଼ ଗଲା ପିଣ୍ଡୁ ପରାଣ,
ଦେଖି ତାନ୍ତିଆଟୋପି
ଚନ୍ଦନ ହଜୁର ସହିତ
ବନେ ରହିଲେ ଛପି ।
ଶେଷେ ଧୃତ ହୋଇ ପାଇଲେ
ଫାସୀ ବିଦେଶୀ ହସ୍ତେ
ଗଲେ ଚନ୍ଦନହଜୁର ଲୁଚି
ନେପାଳ ପଥେ ।
ସେହି ପଥେ ନାନାସାହେବ
ଯାଇ ଲୁଚିଲେ ବନେ

ବାହାଦୁରଶାହ ଦିଲ୍ଲୀରେ
ବନ୍ଦୀ ହୋଇଲେ ରଣେ ।

ନିର୍ବାସିତ ହୋଇ ରେଙ୍ଗୁନେ
ସେ ତ ଛାଡ଼ିଲେ ପ୍ରାଣ
ହରାଇ ସନ୍ତାନ ସନ୍ତତି
ନ ହରାଇ ସମ୍ମାନ ।

ଚନ୍ଦନ ହଜୁରି ନେପାଳେ
ରହି ବାର ବରଷ
ଶେଷେ ବାହୁଡ଼ିଲେ ଦେଶକୁ
ହୋଇ ଅତି ହରଷ ।

ସ୍ୱାଧୀନତା-ରଣେ ଓଡ଼ିଶା-
ନାମ ରଖିଲେ ଟେକ
ପ୍ରତି ଓଡ଼ିଆର ହୃଦୟେ
ଦେଲେ ସେ ମନ୍ତ୍ର ଲେଖି ।

ସିଂହଭୂମି ରାଜା ଅର୍ଜୁନ-
ସିଂହ ସେହି କାଳରେ
ଛାଡ଼ିଲେ ବିଦ୍ରୋହୀ ଭେଳଲେ
ପ୍ରାଣ ବନ୍ଦୀଶାଳରେ ।

ସିପାହୀ-ବିଦ୍ରୋହ ଇଂରେଜ-
ମାନେ ଦମନ କରି
ଶାସିଲେ ଭାରତ ନିଶ୍ଚିନ୍ତେ
ଶତ ବରଷ ଧରି ।

ମାତ୍ର ସେ ବିଦ୍ରୋହ-ବହ୍ନି ତ
କାହିଁ ଲିଭିଲା ନାହିଁ
କୁହୁଳି କୁହୁଳି ଉଠିଲା
ଜଳି ମୁକତି ପାଇଁ ।

ଲାଗିଲା ଅହିଂସା-ସମର
ହେଲା ଦେଶ ସ୍ୱାଧୀନ
ପ୍ରଭାତିଲା ପୁଣି ଭାରତେ
ନୂଆ ସୁଖର ଦିନ ।

ସିପାହୀ-ବିଦ୍ରୋହ ପୋତିଲା
ମଞ୍ଜି ସ୍ୱାଧୀନତାର
ଫିଟାଇଲା ଆଗ ଏ ଦେଶ-
ପାଇଁ ମୁକତି-ଦ୍ୱାର ।

---

# ଶହୀଦ ବାଜି ରାଉତ

( ୧ )

ଗର୍ଜନ ଉଠେ
ଘୋର ଅନ୍ଧାରେ
"ଡଙ୍ଗା ଫିଟା ରେ ପାଜି !"
"ପ୍ରଜା-ମଣ୍ଡଳ-
ହୁକୁମ ନାହିଁ ତ !"
ଜବାବ ଦେଉଛୁ ବାଜ ।

( ୨ )

ଢେଙ୍କାନାଳର
ପ୍ରଜା-ମଣ୍ଡଳ-
ବାଳକଙ୍କ ସିପାହି ସେ ଯେ
ବନ୍ଧୁକଧାରୀ
ଫଉଜ ଆଗରେ
ଠିଆ ହୋଇ କହେ ଡେଜେ ।

× × × ×

( ୩ )

ଗଠିତ ହୋଇଛି
ପ୍ରଜା-ମଣ୍ଡଳ
କରିବ ରାଜୁତ୍ତି ଲୋପ
ନ ମାନେ ପରଜା
ରାଜାର ଆଦେଶ
ଗୁଳି ବନ୍ଧୁକ ତୋପ ।

( ୪ )

ଭାଙ୍ଗି ପୁରୁଣା
ରାଜୁତ୍ତି ଗଢ଼ିବ
ନୂଆ ରାଜୁତ୍ତି ସେ ଆଜ
ହେଇ ଅଛି ପଣ
ପ୍ରଜା-ମଣ୍ଡଳ,
ସୈନିକ ତା'ର ବାଜ ।
ପରଜା-ଶାସନ
ପାଇଁ ପ୍ରାଣ ଦେବ
ହୋଇଅଛି ସେ ତ ରାଜ,
ସୈନିକ ବୀର ବାଜ ।

× × × ×

( ୫ )

ଘନ ଅନ୍ଧାରେ
ଝରଇ ବର୍ଷା
ମେଘ ଘଡ଼ଘଡ଼ ବଢ଼ୁ !

ତଙ୍ଗା ଉପରୁ
ଜବାବ ଦିଏ ସେ
ଉଠି ଆଖି ମଳି ମଳି ନଦୁଁ ।

( ୬ )

ବାର ବରଷର
ସନ୍ତାନ ଗୋର
ଜନମି ଦେଇଛୁ ଗୁଡ଼
ରାଜୁତ ଜଣି ସେ
ଲେଉଟି ଆସିବ
ବୀର ଦର୍ପରେ ମାଡ଼ ।

( ୭ )

ଲେଉଟି ଆସିବ
ଏକଇର ବଳା
ଜନମ-ପରାଣ-ନିଧି
* କଣ୍ଠପୁରର
ବାଜିଆ ମାଆ-ସେ
ବୁଝିନ ବିଧାନ ବିଧି ।

× × × ×

* ଢେଙ୍କାନାଳ ରାଜ୍ୟର ବ୍ରାହ୍ମଣୀ ନଦୀ କୂଳରେ ଅବସ୍ଥିତ ନୀଳକଣ୍ଠପୁର । ଏହିଠାରେ ବାଜି ରାଉତ ଓ ଅନ୍ୟ ଶହୀଦମାନେ ଗୁଳି ଶ୍ରେଣ୍ଠରେ ମରିଥିଲେ ।

( ୮ )

ଜାଣିନ ସଇନ
ବନ୍ଧୁକ-ମୂର୍ହେଁ
ଗୁଡ଼ା ହେବ ବୋଲି ଆଜ
ଦଶମାସ ଯା'ଙ୍କୁ
ଗର୍ଭେ ଧଇଲା
ସେହ୍ନ ତା' ଚଗଲା ବାଜ !

( ୯ )

କଣ୍ଠସ୍ୱରର
ମହା ମହୀରୁହ
ନଶୀଥେ ଲୋଟଇ ତଳେ
ବଜ୍ର ଗରଜେ
ଅନ୍ଧାର ପଥେ
ବଜୁଳି ଝଟକ ଜଳେ ।

( ୧୦ )

ଥା'ନ୍ତା ଶୋଇ ସେ
ଜନମୀ-ଅଙ୍କେ
ଏ ଝଡ଼ ବରଷା ରାତ,
ରଜାର ଫଉଜ
ଆଗରେ ଆଜ ସେ
ଦେଖାଇ ଦେଲା ରେ ଘାତ ।

( ୧୧ )

କଟାଇଥିଲା ଯେ
ବାରଟି ବରଷ
ନାଚ ନାଚ ଗୀତ ଗାଇ,
ଘନ ଅନ୍ଧାରେ
ଜବାବ ଦେଲା ସେ
ଡଙ୍କା ଗୁଡ଼ବ ନାହିଁ ।

ଜବାବ ଦେଲା ରେ
ଗୁଡ଼କୁ ଫୁଲାଇ
ଫଉଜ ମୁହଁକୁ ଚୃହିଁ
'ଡଙ୍କା ଗୁଡ଼ବ ନାହିଁ ।"

× × × ×

( ୧୨ )

ପ୍ରଜାମଣ୍ଡଳ
ହୁକୁମ ମାନେ ସେ
ନ ଜାଣଇ ଆନ ରଜା,
ନ ଜାଣଇ ସେ ତ
ଫଉଜର ବଳ
ବନ୍ଧୁକ ଗୁଳି ସଜା !

( ୧୩ )

ପ୍ରଜାମଣ୍ଡଳ
ହୁକୁମ କରନ୍ତି
ପଡ଼ନ୍ତି ତାହାର ପାଳି
ବ୍ରାହ୍ମଣୀ ନଈ
ଡଙ୍ଗା ଭିତରେ
ସେଦ୍ଧ ଆଜ ଜଗୁଆଳି ।

( ୧୪ )

ବତାସ ବେଗରେ
ନାଚଇ ଭୀଷଣ
ଚଞ୍ଚଳ ନଦୀଜଳ,
କଣ୍ଠପୁରର
ଘାଟରେ ଡଙ୍ଗା
ହୁଏ ବେଶୀ ଟଳମଳ ।

( ୧୫ )

ତାହାର ଉପରେ
ଛିଡ଼ା ହୋଇ କହେ
ଉପରକୁ କରି ମୁହଁ
କଣ୍ଠପୁରର
ଗୋରୁଜଗା ପିଲା
ବାର ବରଷର ମୁଁ ଅ !

( ୧୬ )

ନୁହେଁ ତ ସେ କଛୁ
ନେତା ସେନାପତି
ଦେଖି ନାହିଁ ଗୃହଶାଳୀ,
ପ୍ରଜାମଣ୍ଡଳ
ଆଦେଶ ମାନିବା
ଶିଖିଛୁ ଜୀବନେ ଖାଲି ।

( ୧୭ )

ନ ଶିଖି ବହିରୁ
ଶିଖିଥିଲୁ ଯାହା
ନାହିଁ ତହୁଁ ବଡ଼ ପାଠ
ଓଡ଼ିଶା ମୂଲକେ
ଜନମି ନାହିଁ ତ
ତାହା ତହୁଁ ବଡ଼ ଗୃହ ।

( ୧୮ )

ଜନମି ନାହିଁ ତ
ବଡ଼ ଦଗଜସ୍ୱୀ
ତାହା ତହୁଁ ବେଶି ବୀର
ମଣିଷର ଯେହୁ
ଇଜ୍ଜତ ଲାଗି
ପତାଇ ଦେଲୁ ରେ ଶିର ।

( ୧୯ )

ପଠାଇ ଦେଲ ରେ
ଆପଣାର ବୁକୁ
ବାର ବରଷର ଟୋକା
ଦଣ୍ଡକ ପାଇଁ
ଜଗତ ଗୋଟାକୁ
କଣଦେଲ ପର ବୋକା !

( ୨୦ )

ହିଂସ୍ର ପଲ୍ଟନ
ଆଗେ ଛିଡ଼ା ହୋଇ
କହିଲ, "ଘୁଞ୍ଚିବ ନାହିଁ
ପ୍ରଜା ମଣ୍ଡଳ
ହୁକୁମ ମାନେ ମୁଁ"
କହିଲ ଗର୍ବେ ଚାହିଁ ।

× × × ×

( ୨୧ )

ଫୁଟିଲା ଗୁଡୁମ୍
ବନ୍ଧୁକ ଗୁଳି
ସେହି ଶିଶୁ ମଥାପରେ
ଘନ ଅନ୍ଧାରେ
ବାଳକ ରୁଧିର
ମିଶିଗଲା ନଦୀଜଳେ

( ୨୨ )

ନିମିଷକେ ତା'ର
କ୍ଷୁଦ୍ର ଶରୀର
ଝଙ୍କାରେ ଯାଏ ଗଡ଼ି
ନିମିଷକେ ପୁଣି
ଛୁଡ଼ା ହେଲା ସେ ତ
ଡାକ ଗୁନ୍ଦେ କରି ରଡ଼ି—

( ୨୩ )

"ଯାଉ ପାରିହେବେ
"ସଇନ, ଆସ ରେ
"ପ୍ରଜା-ମଣ୍ଡଳ-ଭାଇ !
"କିଏ କାହିଁ ଅଛ
"ନ ଛାଡ଼ିବା ଯାଉ
"ଆସ ରେ ଆସ ରେ ଧାଇଁ ।

"ମଣିଷ-ରକତ
"ମଣିଷ ପିଉଛି
"ଦେଖ ଅନ୍ଧାରେ ରହି
"ଆସ ରେ ଆସ ରେ ଧାଇଁ !"

× × × ×

( ୨୪ )

ଘଡ଼ଘଡ଼-ରଡ଼
କାଟି ସେ ଡାକରା
ଗଲା ପଶି ଦଶଦିଶି;
ସେ ଆବାଜ ଶୁଣି
ଉଠିଲା କମ୍ପି
ସତେ କି ଗମ୍ଭୀର ନିଶି !

( ୨୫ )

ଆସିଗଲେ ନଟ,
ହୃଷି ପଧାନ
ଗୁରି, ଲକ୍ଷ୍ମଣ, ରଘୁ
ନେତା ବାଜି ପାଶେ
ଛୁଡ଼ା ହେଲା ଆସି
ନର୍ଶ୍ଚ କ ଖାର ଫଗୁ ।

( ୨୬ )

ଡଙ୍ଗା-ଦଉଡ଼ି
କଟିରେ ବାନ୍ଧି
ଛୁଡ଼ା ହେଲେ ସବୁ ଖାର
ନ ଛୁଡ଼ିବେ ବୋଲି
ଜବାବ ଭଣିଲେ
ଉନ୍ନତ କରି ଶିର ।

( ୨୭ )

ଆତୁର ଫୁଟିଲା
ବନ୍ଧୁକ ଗୁଳ
ଗୁଡ଼ୁମ୍ ଗୁଡ଼ୁମ୍ ହୋଇ
ଘନ ଅନ୍ଧାରେ
ଗୋଟି ଗୋଟି ବୀର
ପଡ଼ିଲେ ସେଠାରେ ଶୋଇ ।

( ୨୮ )

ବହୁ ଦିନୁଁ ଯେଉଁ
ନୟନେ ନିଦ୍ରା
ନ ଥିଲା ଚିନ୍ତା କରି,
ଚିର ନିଦ୍ରାରେ
ମୁଦିଲେ ସେ ଆଖି
ସେଠାରେ ସର୍ବେ ମରି ।

( ୨୯ )

କଣ୍ଟକ ଅଣାଇ
ସେହି ମୃତ୍ତିକାର
ହେଲା ବଡ଼ ପଚୁଆର,
ପୁରୁଣା ରାଜୁଡ଼ା-
ରାଜୁତି ସରିଲା
ସମାଧି ହୋଇଲା ତା'ର ।

( ୩୦ )

ହିଂସା-ଶକ୍ତି
ପଡ଼ିଲା ଭୂଷୁଡ଼ି
ରହିଲା ଜନତା ଶକ୍ତି;
ସେହି ଶକ୍ତି ପାଇଁ
ନିଜ ଜୀବନକୁ
ବଳି ଦେଲେ କେତେ ହାୟ !

( ୩୧ )

ରଖିଲେ ଶହୀଦ-
ସ୍ମୃତି ଏ ଧରଣୀ
କେତେ ଅମୂଲ୍ୟ ପ୍ରାଣ
ଯୁଗ ଯୁଗ ଧରି
ବଞ୍ଚିଲେ ସେ ତ
ହୋଇ ଜାତି-ଅଭିମାନ ।